# ବାମଣ୍ଡା କୃଷିଉନ୍ନତ ନିୟମାବଳୀ ।

( ନିଖିଳ ବାମଣ୍ଡା ଅର୍ଥୋନୈତିକ କେନ୍ଦ୍ର-ମନ୍ତ୍ରଣା ସଭାଦ୍ୱାରା ପ୍ରସ୍ତୁତ
ଏବଂ ଶ୍ରୀମାନ୍ ବାମଣ୍ଡାଧୀଶ୍ୱରଙ୍କ ସମ୍ମତି ପ୍ରାପ୍ତ । )

ତା ୬ । ୧୦ । ୧୯୩୭ ମସିହା

# ବାମଣ୍ଡା କୃଷି ଉନ୍ନତି ନିୟମାବଳୀ ।

ବାମଣ୍ଡା ଷ୍ଟେଟର ଚାଷ ଓ ଚାଷୀ କୁଳର ଅବସ୍ଥା ନିତାନ୍ତ ଖରାପ ଥିବାରୁ ସେମାନଙ୍କର ଉନ୍ନତି ପାଇଁ ନିମ୍ନଲିଖିତ ଉପାୟମାନ ସ୍ଥିର କରା ହୋଇଅଛି । ଏହାକୁ ବାମଣ୍ଡା କୃଷି ଉନ୍ନତି ନିୟମାବଳୀ ବୋଲାଯିବ ।

ଚାଷର ଉନ୍ନତି ନିମନ୍ତେ ଜଳର ନିତାନ୍ତ ଦରକାର । ତେଣୁ ଷ୍ଟେଟ ମଧ୍ୟରେ କେଉଁଠାରେ କିପରି ଅଭାବ ଓ ଅସୁବିଧା ଅଛି ତାହା ସବୁ ସ୍ଥିର କରିବାପାଇଁ ସବ୍‌ଡିଭିଜନ ଅଫିସର ଏବଂ ଅନ୍ୟାନ୍ୟ କର୍ମଚାରୀମାନେ ଯେଉଁମାନେ ଏ କାର୍ଯ୍ୟ ନିମନ୍ତେ ମନୋନୀତ ହେବେ ସେମାନେ ପ୍ରତ୍ୟେକ ଗ୍ରାମ ତନ୍ନ ତନ୍ନ କରି ଯାଞ୍ଚ କରିବେ ଏବଂ କେଉଁ ଗ୍ରାମରେ କେଉଁ ପ୍ରକାରର ପାଣିଭଣ୍ଡାର ଆବଶ୍ୟକ ତହିଁନିମନ୍ତେ ଆଗାମୀ ଶୀତଋତୁ ମଧ୍ୟରେ ସ୍ଥାନ ଠିକ କରିବେ ।

ଏପରି ଭାବରେ ଏହି କାର୍ଯ୍ୟ ଚଳାଇବାକୁ ହେବ ଯେପରିକି ସନ ୧୯୩୭ ସାଲ ଜାନୁୟାରୀ ମାସରୁ ଆରମ୍ଭ କରି ବ ୫ ର୍ଷ ମଧ୍ୟରେ ସମସ୍ତ କାର୍ଯ୍ୟ ଶେଷ ପାଇବ ।

୧- ପ୍ରତ୍ୟେକ ଗ୍ରାମରେ ଲୋକସଂଖ୍ୟା ଅନୁପାତରେ ପିଇବା ପାଣି ନିମନ୍ତେ ଗୋଟିଏ କିମ୍ବା ବେଶି କୂଅ ନିଶ୍ଚୟ ରହିବ ।

୨- ଗ୍ରାମବାସୀମାନେ ସାଧାରଣତଃ ପାଣି ଅଭାବରୁ ବାଗବଗିଚା କରିବାକୁ ସକ୍ଷମ ହୁଅନ୍ତି ନାହିଁ । ତେଣୁ ଏହି ଅଭାବ ପୂରଣ କରିବା ପାଇଁ ବଗବଗିଚାକୁ ଜଳ ଯୋଗାଇବା ନିମନ୍ତେ ଅଲଗା କୂଅ ମଧ୍ୟ ଗ୍ରାମେ ଗ୍ରାମେ ଖୋଳାଯିବ ।

୩- ବର୍ତ୍ତମାନ ଗ୍ରାମମାନଙ୍କରେ ଯେଉଁ କଟା, ବନ୍ଧ ଓ ଅନ୍ୟାନ୍ୟ ଜଳଭଣ୍ଡାର ଅଛି ତାହାସବୁ ପୋତି ଯାଉଅଛି କିମ୍ବା ଦଳ ଇତ୍ୟାଦି ଦ୍ୱାରା ପୂରି ଯାଉଅଛି ଏବଂ ତାହା କ୍ରମଶଃ ବ୍ୟବହାରକୁ ନ: ନଷ୍ଟହୋଇ ଯାଉଅଛି, ସେ ସବୁ ପୁଣି ପରିଷ୍କାର କରିବାକୁ ହେବ ଓ ବାଲି ପଙ୍କ ଇତ୍ୟାଦି ବାହାର କରି ଭଲ ରୂପେ ରଖାଯିବ । ଏସବୁ କାର୍ଯ୍ୟ ଗ୍ରାମବାସୀମାନେ କରିବାକୁ ଦାୟୀ ରହିବେ ।

୪- କଟା ବନ୍ଧ, କେନାଲ ଇତ୍ୟାଦି ନୂତନ ଭାବରେ ତୟାର କରିବା ନିମନ୍ତେ ଷ୍ଟେଟ ସାହାଯ୍ୟ ଦିଆଯିବ ।

୫- ଯେଉଁସବୁ ଗ୍ରାମରେ ଅଧିକ ପାଣି ଯୋଗୁଁ ଜମି ସବୁ ଧାଇଭଗଡା ହୋଇ ଯାଉଛି ଏବଂ ବର୍ଷାଦିନର ବହଳା ପାଣି ଜମି ଭଣକାଇ ପକାଉଛି ସେସବୁ ପାଣି ବାନ୍ଧ ଦ୍ୱାରା କିମ୍ବା କେନାଲରେ ପକାଇ ଜଳଭଣ୍ଡାର ପ୍ରସ୍ତୁତ କରିବାକୁ ହେବ । ସେ ସବୁ ଅଧିକା ପାଣିକୁ ନଷ୍ଟ ନ କରି ଯେଉଁସବୁ ଜମିକୁ ପାଣି ନମିଳେ ତହିଁରେ ପାଣି ମଡାଇ କୃଷି ଉନ୍ନତି କରିବାକୁ ହେବ । ଗ୍ରାମବାସୀମାନେ ଏହା କରିବାକୁ ଦାୟୀ ରହିବେ ।

୬- ପାଣିଭଣ୍ଡାର ଇତ୍ୟାଦି ତୟାର କରିବାର ଖର୍ଚ୍ଚ ଯୋଗାଇବା ନିମନ୍ତେ ପ୍ରତ୍ୟେକ ଗ୍ରାମରେ ଗୋଟିଏ ଗ୍ରାମ୍ୟପାଣ୍ଠି ରହିବ । ଫସଲ ଅମଦାନପରେ ପ୍ରତ୍ୟେକ ବ୍ୟକ୍ତି ପ୍ରତି ୧ ଟଙ୍କା ରାଜସ୍ୱପ୍ରତି ଏକତାମ୍ବି ଲେଖାଏଁ ଧାନ ଦେବେ । ଏହି ପାଣ୍ଠିରୁ ପଲ୍ଲି ମଙ୍ଗଳ କାର୍ଯ୍ୟରେ ମଧ୍ୟ ଖର୍ଚ୍ଚ କରାଯିବ ।

## ୨ ୟ ଅଧ୍ୟାୟ ।

### ଜମିର ଉନ୍ନତି

୧- ଜମିରେ ପାଣିମତ କୃଷିର ଉନ୍ନତି ନିମନ୍ତେ ଜମିକୁ ସମ କରିବାକୁ ହେବ । ପ୍ରତ୍ୟେକ ପ୍ରଜା ନିଜନିଜର ଜମି ସମାନକରିବାକୁ ଚେଷ୍ଟାକରିବେ ଓ ଦାୟୀ ହେବେ ।

୪ ର୍ଥ ଅଧ୍ୟାୟ ।

୧– ପ୍ରତ୍ୟେକ ଗ୍ରାମରେ ବାଗବଗିଚା କରିବାକୁ ହେବ, ତାହାକୁ ନିମ୍ନଲିଖିତ ତିନି ପ୍ରକାରରେ ବିଭାଗ କରାଯାଇଅଛି, ଯଥା—

୧– ଫଳ ବଗିଚା, ୨– ଶାକସବଜି, ୩– ବାର ବଗିଚା ।

୨– ପ୍ରତ୍ୟେକ ଗ୍ରାମରେ ଗୋଟିଏ ସର୍ବସାଧାରଣ ଫଳ ବଗିଚା ରହିବ, ଏଥିପାଇଁ ଗୋଟିଏ ସ୍ଥାନ ନିର୍ଦ୍ଦିଷ୍ଟ କରି ଦିଆଯିବ ଏବଂ ଗ୍ରାମବାସୀମାନଙ୍କୁ ତହିଁରୁ ଖଣ୍ଡେ ତାହା ଦିଆଯିବ, ଯହିଁରେ ସେମାନେ ନିଜ ନିଜର ଗଛ ଲଗାଇବେ । ନିମ୍ନଲିଖିତ ଗଛସବୁ ସେହି ବଗିଚାରେ ରହିବ, ଯଥା—ଲେମ୍ବୁ, ପଣସ, କମଳା, କଦଳୀ, ଆମ୍ବ, ଟମରସ, ଅମୃତଭଣ୍ଡା, ତରଭୁଜ ଇତ୍ୟାଦି ।

୩– ଶାକସବଜି ମଧ୍ୟରେ ଆଳୁ, ପିଆଜ, ରସୁଣ, ଲଙ୍କାମରିଚ, ସାରୁ ଇତ୍ୟାଦି ଲଗାହେବ ।

୪– ପ୍ରଜାମାନେ ଏସବୁ ପଦାର୍ଥ ଖୁବ୍ ବେଶୀ ପରିମାଣରେ କରିବା ଦରକାର ଯେପରି ଉଦ୍‌ବୃତ୍ତ ମାଲ୍ ରପ୍ତାନି ହୋଇ ପାରିବ ।

୫– ପ୍ରଜାମାନେ ନିଜ ନିଜ ଘରବାଡ଼ିରେ ନିମ୍ନଲିଖିତ ପନିପରିବା କରିବେ । ଯଥା—ପାଡନ-ଘଣ୍ଟା, ବାଇଗଣ, ବୋଇତି କଖାରୁ, ଭେଣ୍ଡି, ସିମ୍ବ, ଶାଗ, କାକୁଡ଼ି, ରଇଁସା ଏବଂ ସାରୁ ପ୍ରଭୃତି ।

୫ ମ ଅଧ୍ୟାୟ ।

ଗୋ ପାଳନ ଓ ଗୋ ପ୍ରଜନନ ।

୧– ଚାଷ ଗୋରୁ ହଳ ବଳଦ ଇତ୍ୟାଦିର ଉନ୍ନତି ନିମନ୍ତେ ପ୍ରଜାସାଧାରଣଙ୍କୁ ଗୋରୁପାଳନ ଏବଂ ପ୍ରଜନନ ସମ୍ବନ୍ଧରେ ଉପଯୁକ୍ତ ଶିକ୍ଷା ଦିଆଯିବ ।

୨– ପ୍ରଜନନ ନିମନ୍ତେ ଷଣ୍ଢ ଆମଦାନି କରାଯିବ । ଏପରି ଷଣ୍ଢ ଅଣାଯିବ ଯଦ୍ଦ୍ୱାରା ଉଭୟ ଉଦ୍ଦେଶ୍ୟ ସାଧିତ ହେବ—ଅର୍ଥାତ୍ ଗୋରୁମାନେ ଗୋ ବେଶୀ ଦେବେ ଏବଂ ବଳଦମାନେ ବେଶୀ କଷ୍ଟସହି ଓ କାର୍ଯ୍ୟଦକ୍ଷ ହେବେ ।

୩– ଭଲ ଜାତିର ଗୋରୁ ପ୍ରଜାମାନେ ରଖିବା ବାଞ୍ଛନୀୟ ।

୪– ଶ୍ରେଷ୍ଠ ଜାତିରୁ ଦେବଗଡ ଓ କୋଟଗ୍ରାମରେ ଆଦର୍ଶ ଗୋଶାଳା ଓ ପକ୍ଷିଶାଳା ଖୋଲାଯିବ ।

୫– ପ୍ରଜାମାନେ ଗାଈ ଗୋରୁଙ୍କ ପ୍ରତି ନିର୍ଦ୍ଦୟ ବ୍ୟବହାର କରି ପାରିବେ ନାହିଁ । ତଦ୍ଦ୍ୱାରା ସେମାନଙ୍କର ଶୀଘ୍ର ମୃତ୍ୟୁ ଘଟେ । ପାଞ୍ଜଣ ପରବର୍ତ୍ତିରେ ସହୃଦୟ ବ୍ୟବହାର ଚଳାଇବାକୁ ହେବ ।

୬– ଗୋରୁମାନଙ୍କର ଖାଇବା ନିମନ୍ତେ ଖାଦ୍ୟର ଅଭାବ ଘଟୁଥିବାରୁ ନଡ଼ାପାଳ ନଷ୍ଟ ନକରି ସାଇତି ରଖିବାକୁ ହେବ । ଫସଲ ଆମଦାନି ପରେ କେହି ତାହା ନଷ୍ଟ କରି ପାରିବେ ନାହିଁ ।

୭– ଚିନି ଘାସ ଓ ହାତି ଘାସ ଯେପରି ସୁବିଧା ଅଛି କରିବାକୁ ହେବ ।

୮– ଗୋଚର ଜମି କେହି ଆବାଦ କରି ନେଇ ପାରିବେ ନାହିଁ ।

୯– ପ୍ରତ୍ୟେକ ସବ୍‌ଡିଭିଜନ ପାଇଁ ଶ୍ରେଷ୍ଠ ଗୋଟିଏ ଗୋଟିଏ ଜାତିଆ ଷଣ୍ଢ ଦେବେ ।

୧୦ ଅକର୍ମଣ୍ୟ ଗାଈ ଗୋରୁମାନଙ୍କୁ ଛାଡ଼ି ନଦେଲେ ତାହାର ମାଲିକମାନେ ସେମାନଙ୍କର ଯତ୍ନ ନେବେ ।

୧୧– ପ୍ରଜାମାନେ ଦୁଧ ନିମନ୍ତେ ଦୁଧିଆଳି ଗାଈ ରଖିବେ ।

୧୨– ପ୍ରତ୍ୟେକ ଗ୍ରାମରେ ଘିଅ ତିଆରି ହୋଇ ବିକ୍ରି କରାଯିବ ।

୨- ଜମିରେ ସାର ଦେବା ନିତାନ୍ତ ଆବଶ୍ୟକ, ତେଣୁ ପ୍ରତ୍ୟେକ ପ୍ରଜା ନିଜ ନିଜ ଜମିରେ ଖାତ-ଗୋଲ ତହିଁରେ ଗୋବର ଓ ଅନ୍ୟାନ୍ୟ ଆବର୍ଜନା ପୋତି ରଖିବେ । କଞ୍ଚାପତ୍ର ସାରଦେବା ମଧ୍ୟ ନିତାନ୍ତ ଦରକାର ।

୩- ଯେଉଁଠାରେ ଦେଖାଯିବ ଜଣେ ପ୍ରଜାର ଅଧିକ ଜମି ଅଛି ଏବଂ ସେ ତାହା ନିଜେ ଚାଷ କରି ନ ପାରି ପଡ଼ିଆ ପକାଇଅଛି ସେପରି ସ୍ଥଳରେ ସେ ଯେତିକି ଚାଷ କରିପାରିବ ସେତିକି ଦିଆଯିବ ଏବଂ ଉଦ୍‌ବୃତ୍ତ ଜମି ଅନ୍ୟ ପ୍ରଜାକୁ ଦିଆଯିବ ।

୪- ତଉଜି ଖାରଜ ପଡ଼ିଆ ଜମି ଅବସ୍ଥା ବିବେଚନାରେ ମାଫିରେ କେତେକ ବର୍ଷ ପାଇଁ ଚାଷ କରିବାକୁ ଅନୁମତି ଦିଆଯିବ ।

୫- ଗ୍ରାମ ନିକଟସ୍ଥ ଛୋଟ ଜଙ୍ଗଲ ସଫା କରିବାକୁ ଜଙ୍ଗଲ ବିଭାଗ ଅନୁମତି ଦେବେ । ଏଥି-ନିମିତ୍ତ ଗୌନ୍ତିଆମାନଙ୍କୁ ଦରଖାସ୍ତ ଦେବାକୁ ହେବ ।

୬- ବନ୍ୟଜନ୍ତୁ କିମ୍ବା ଅନ୍ୟାନ୍ୟ ଜଙ୍ଗଲି ଜନ୍ତୁଦ୍ୱାରା ଫସଲ ନଷ୍ଟ ବନ୍ଦ କରିବା ନିମନ୍ତେ ଗ୍ରାମବାସୀମାନେ ଫାଙ୍କା ଆଓ୍ୱାଜ ଏବଂ ବାଜା ବଜାଇ ପଶୁମାନଙ୍କୁ ଘଉଡ଼ାଇ ଦେବେ । ଜମି ମଧ୍ୟରେ ପଶିବା ପୂର୍ବରୁ ଏପରି କରିବାକୁ ଗ୍ରାମବାସୀମାନେ ଦାୟୀ ରହିବେ ।

୭- ପ୍ରତ୍ୟେକ ବର୍ଷ ଜାନୁଆରି ମାସରେ କ୍ରମ ଅନୁସାରେ ଗୋଟିଏ ଗୋଟିଏ ସବ୍‌ଡିଭିଜନରେ କୃଷି ପ୍ରଦର୍ଶନୀ ହେବ । ତହିଁରେ ଗୋରୁ, ମଇଁଷି ଇତ୍ୟାଦି ଗୃହପାଳିତ ପଶୁମାନଙ୍କର ମଧ୍ୟ ପ୍ରଦର୍ଶନୀ ହେବ ଏବଂ ଉତ୍କୃଷ୍ଟ ପଦାର୍ଥମାନଙ୍କୁ ପୁରସ୍କାର ଦିଆଯିବ ।

୮- ଯେଉଁ ଗ୍ରାମରେ ଦେଖାଯିବ ଯେ ଜଣେ ପ୍ରଜାର ଜମି ଘାଇ ଭଗଡ଼ା ହୋଇ ନଷ୍ଟ ହେଲେ ଯଦି ତଦ୍ଦ୍ୱାରା ଗ୍ରାମର ଅନ୍ୟାନ୍ୟ ଜମି ମଧ୍ୟ ନଷ୍ଟ ହୋଇଯିବ ସେପରି ସ୍ଥଳେ ସେହି ଜମିର ମରାମତି ଗ୍ରାମବାସୀମାନଙ୍କ ଦ୍ୱାରା ହେବ । ସେମାନେ ଏହା କରିବାକୁ ଦାୟୀ ରହିବେ ।

## ୩ୟ ଅଧ୍ୟାୟ ।

୧- ପ୍ରଜାମାନଙ୍କର ସୁବିଧା ନିମନ୍ତେ ପ୍ରତ୍ୟେକ ସବ୍‌ଡିଭିଜନର ପ୍ରତ୍ୟେକ ବ୍ଲକରେ ବିହନ ପାଇଁ ଗୋଟିଏ ଗୋଟିଏ ଭଡ଼ ରହିବ ।

୨- ଯେଉଁ ଯେଉଁ ଜମିରେ ଯେଉଁ ଯେଉଁ ଫସଲ ହେବାର ସୁବିଧା ଅଛି ସେଠାରେ ସେହି ଫସଲ କରିବାକୁ ହେବ । ଅର୍ଥାତ୍ ଯେଉଁ ଜମିରେ ଆଖୁ ଫସଲ ହେବା ଯୋଗ୍ୟ ସେଠାରେ ଆଖୁ କରାଯିବ—ଧାନ କରାଯିବ ନାହିଁ ।

୩- ପ୍ରତ୍ୟେକ ଜମି ଦୋଫସଲି ହେବା ଦରକାର । ତହିଁ ନିମିତ୍ତ ପ୍ରଜାମାନେ ଯଥାସାଧ୍ୟ ଚେଷ୍ଟା କରିବେ ।

୪- ନାନା ପ୍ରକାର ଫସଲ ଉତ୍ପାଦନ କରିବାର ଚେଷ୍ଟା କରିବାକୁ ହେବ, ଯଥା—ଜେଠେର, ଛିସିଣା, ଚୈତାମୁଗ, କାନ୍ଦୁଲ, ହରଡ଼, ଚିନାବାଦାମ, କପା, ଭଙ୍ଗ, ଅଦା, ହଳଦୀ, ଆଖୁ ଇତ୍ୟାଦି ଇତ୍ୟାଦି ।

୫- ଯେତେବେଳେ କୌଣସି ନୂତନ ଜିନିଷ ଚାଷ କରିବାକୁ ହେବ ସେତେବେଳେ ଯଦି ତାହାର ବିହନ ନ ମିଳେ ତେବେ ଷ୍ଟେଟ ତରଫରୁ ବିହନ ଅଗ୍ରିମ ଦିଆଯିବ । ଫସଲ ପରେ ପ୍ରଜାମାନେ ଷ୍ଟେଟରୁ ପାଇଥିବା ବିହନ ଫେରସ୍ତ ଦେବେ ।

୬- ଆଖୁରୁ କିପରି ଭାବରେ ସଫା ଗୁଡ଼ ଓ ସଫା ଚିନି ଅଳ୍ପ ଖରଚରେ ହୋଇପାରେ ସେଥିନିମିତ୍ତ ପ୍ରଜାମାନଙ୍କୁ ଶିକ୍ଷା ଦିଆଯିବ ।

## ୪ର୍ଥ ଅଧ୍ୟାୟ ।

୧- ପ୍ରତ୍ୟେକ ଗ୍ରାମରେ ବାଗବଗିଚା କରିବାକୁ ହେବ, ତାହାକୁ ନିମ୍ନଲିଖିତ ତିନି ପ୍ରକାରରେ ବିଭକ୍ତ କରି ହୋଇଅଛି, ଯଥା—

୧- ଫଳ ବଗିଚା, ୨- ଶାକସବଜି, ୩- ବାଡ଼ି ବଗିଚା ।

୨- ପ୍ରତ୍ୟେକ ଗ୍ରାମରେ ଗୋଟିଏ ସର୍ବସାଧାରଣ ଫଳ ବଗିଚା ରହିବ, ଏଥିପାଇଁ ଗୋଟିଏ ସ୍ଥାନ ନିର୍ଦ୍ଦିଷ୍ଟ କରି ଦିଆଯିବ ଏବଂ ଗ୍ରାମବାସୀମାନଙ୍କୁ ତହିଁରୁ ଖେତ୍ର ତାହା ଦିଆଯିବ, ଯହିଁରେ ସେମାନେ ନାନା ଜାତର ଗଛ ଲଗାଇବେ । ନିମ୍ନଲିଖିତ ଗଛସବୁ ସେହି ବଗିଚାରେ ରହିବ, ଯଥା — ଲେମ୍ବୁ, ପଣସ, କମଳା, କଦଳୀ, ଆମ୍ବ, ଡିମିରି, ଅମୃତଭଣ୍ଡା, ତରଭୁଜ ଇତ୍ୟାଦି ।

୩- ଶାକସବଜି ମଧ୍ୟରେ ଆଳୁ, ପିଆଜ, ରସୁଣ, ଲଙ୍କାମରିଚ, ସାରୁ ଇତ୍ୟାଦି ଲଗାହେବ ।

୪- ପ୍ରଜାମାନେ ଏସବୁ ପଦାର୍ଥ ଯେପରି ବେଶୀ ପରିମାଣରେ କରିବା ଦରକାର ଯେପରି ଉଦ୍ବୃତ୍ତ ମାଲ ରପ୍ତାନି ହୋଇ ପାରିବ ।

୫- ପ୍ରଜାମାନେ ନିଜ ନିଜ ଘରବାଡ଼ିରେ ନିମ୍ନଲିଖିତ ପନିପରିବା କରିବେ । ଯଥା— ପୋତଳ, ଘଣ୍ଟା, ବାଇଗଣ, ବୋଇତ କଖାରୁ, ଭେଣ୍ଡି, ସିମ୍ବ, ସାଗ, କାକୁଡ଼ି, ଝଡ଼ୁଁସା ଏବଂ ସାରୁ ପ୍ରଭୃତି ।

## ୫ ମ ଅଧ୍ୟାୟ ।

### ଗୋ ପାଳନ ଓ ଗୋ ପ୍ରଜନନ ।

୧- ଚାଷ ଗୋରୁ ହଳ ବଳଦ ଇତ୍ୟାଦିର ଉନ୍ନତି ନିମନ୍ତେ ପ୍ରଜାସାଧାରଣଙ୍କୁ ଗୋରୁପାଳନ ଏବଂ ପ୍ରଜନନ ସମ୍ବନ୍ଧରେ ଉପଯୁକ୍ତ ଶିକ୍ଷା ଦିଆଯିବ ।

୨- ପ୍ରଜନନ ନିମନ୍ତେ ଷଣ୍ଢ ଆମଦାନି କରାଯିବ । ଏପରି ଷଣ୍ଢ ଅଣାଯିବ ଯଦ୍ଦ୍ୱାରା ଉଭୟ ଉଦ୍ଦେଶ୍ୟ ସାଧିତ ହେବ—ଅର୍ଥାତ୍ ଗୋରୁମାନେ ଗୋ ବେଶୀ ଦେବେ ଏବଂ ବଳଦମାନେ ବେଶୀ କଷ୍ଟସହି ଓ କାର୍ଯ୍ୟଦକ୍ଷ ହେବେ ।

୩- ଭଲ ଜାତର ଗୋରୁ ପ୍ରଜାମାନେ ରଖିବା ବାଞ୍ଛନୀୟ ।

୪- ଷ୍ଟେଟ ତରଫରୁ ଦେବଗଡ଼ ଓ କୋଚିଣ୍ଡାରେ ଆଦର୍ଶ ଗୋଶାଳା ଓ ପକ୍ଷିଶାଳା ଖୋଲାଯିବ ।

୫- ପ୍ରଜାମାନେ ଗାଈ ଗୋରୁଙ୍କ ପ୍ରତି ନିର୍ଦ୍ଦୟ ବ୍ୟବହାର କରି ପାରିବେ ନାହିଁ । ତଦ୍ୱାରା ସେମାନଙ୍କର ଶୀଘ୍ର ମୃତ୍ୟୁ ଘଟେ । ପାଞ୍ଚଣ ପରିବର୍ତ୍ତେ ଶଳୁକା ବ୍ୟବହାର ଚଳାଇବାକୁ ହେବ ।

୬- ଗୋରୁମାନଙ୍କର ଖାଇବା ନିମନ୍ତେ ଖାଦ୍ୟର ଅଭାବ ଘଟିଇବାକୁ ନଡ଼ାସବୁ ନଷ୍ଟ ନକରି ସାଇତି ରଖିବାକୁ ହେବ । ଫସଲ ଆମଦାନି ପରେ କେହି ତାହା ନଷ୍ଟ କରି ପାରିବେ ନାହିଁ ।

୭- ଗୋଚି ଘାସ ଓ ହାତ ଘାସ ଯେଉଁ ସୁବିଧା ଅଛି କରିବାକୁ ହେବ ।

୮- ଗୋଚର ଜମି କେହି ଆବାଦ କରି ନେଇ ପାରିବେ ନାହିଁ ।

୯- ପ୍ରତ୍ୟେକ ସ୍ୱତନ୍ତ୍ରଗ୍ରାମ ପାଇଁ ଷ୍ଟେଟ ଗୋଟିଏ ଗୋଟିଏ ଜାତିଆ ଷଣ୍ଢ ଦେବେ ।

୧୦ ଅକର୍ମଣ୍ୟ ଗାଈ ଗୋରୁମାନଙ୍କୁ ଛାଡ଼ି ନଦେଇ ତାହାର ମାଲିକମାନେ ସେମାନଙ୍କର ଯତ୍ନ ନେବେ ।

୧୧- ପ୍ରଜାମାନେ ଦୁଧ ନିମନ୍ତେ ଦୁଧିଆଳି ଗାଈ ରଖିବେ ।

୧୨- ପ୍ରତ୍ୟେକ ଗ୍ରାମରେ ଘିଅ ତିଆରି ହୋଇ ବିକ୍ରି କରାଯିବ ।

୧୩ ପ୍ରତ୍ୟେକ ପ୍ରଜା ପ୍ରତ୍ୟେକ ଗ୍ରାମରେ ଘର, ମେଣ୍ଢି ମଧ୍ୟ ରଖିବେ। ବାଂଝ ଛେଳି ନ ହେଲେ ମାଇଛେଳି କୌଣସିରୂପେ ମାରିଯାଇ ପାରିବେ ନାହିଁ।

୧୪- ଛେଳି ମେଣ୍ଢି ଅଧିକ ସଂଖ୍ୟାରେ ରଖି ଉନ୍ନତି କରିବାକୁ ହେବ।

୧୫- ପ୍ରତ୍ୟେକ ଗ୍ରାମରେ ଲୋକେ କୁକୁଡ଼ା ପାଳିବେ, ଯେଉଁମାନଙ୍କର କୁକୁଡ଼ା ରଖିବାକୁ ଆପତ୍ତି ହେବ ସେମାନେ ହଂସ ଓ ପାରା ରଖି ପାରିବେ।

୧୬- ଉନ୍ନତିର ସୁବିଧା ଷ୍ଟେଟ ବନ୍ଦୋବସ୍ତ କରି ଦେବେ।

## ୬ଷ୍ଠ ଅଧ୍ୟାୟ।

### ବିବିଧ।

୧- ପଲ୍ଲିମଙ୍ଗଳ କାର୍ଯ୍ୟ ତତ୍ତ୍ୱାବଧାନ ନିମନ୍ତେ ଆଇନ ଅନୁସାରେ, ତତ୍ତ୍ୱାବଧାରକ ନିଯୁକ୍ତ କମିଟି, ସେମାନେ ସକଳ ଧାନଭଣ୍ଡାର ବର୍ଷର ଏବଂ ନିଜ ନିଜ ବ୍ଲକର ପ୍ରଜାମାନଙ୍କଠାରୁ ଶୁଳ୍କ ଆଦାୟ କରିବେ। ସେ ଆୟବ୍ୟୟର ହିସାବ ରଖିବ ଏବଂ କ୍ଷତି ଓ କମତିପାଇଁ ଦାୟୀ ରହିବେ।

୨- ପଣ୍ୟଦ୍ରବ୍ୟ ବିକ୍ରି ସୁବିଧା ନିମନ୍ତେ ଯେଉଁଠାରେ ଦରକାର ସେଠାରେ ହାଟ ବସିବ। ଏଥିନିମନ୍ତେ ଶ୍ରୀମାନ୍ ରାଜାସାହେବ ଏବଂ ରୁଲିଙ୍ଗ ଚିଫ୍‌ଙ୍କର ମଞ୍ଜୁରି ନେବାକୁ ହେବ।

୩- ଗ୍ରାମର ସ୍ୱାସ୍ଥ୍ୟୋନ୍ନତି ନିମନ୍ତେ ବିଶେଷ ଦୃଷ୍ଟି ଦିଆଯିବ। ସ୍ୱାସ୍ଥ୍ୟରକ୍ଷା ନିୟମାନୁଯାୟୀ ଗୃହ ନିର୍ମିତ ହେବ। ଗ୍ରାମ ରାସ୍ତାସବୁ ଭଲ କରିବାକୁ ହେବ। ଗୁହାଳ ଘରର ଖୋଲା ଜାଗାରେ କରିବାକୁ ହେବ। ସନ୍ତାନ ମଙ୍ଗଳ ଆନ୍ଦୋଳନ ପ୍ରତ୍ୟେକ ଗ୍ରାମରେ ପ୍ରବର୍ତ୍ତାଇବାକୁ ହେବ।

୪- ଜଳଭଣ୍ଡାର ସବୁ ଗ୍ରାମବାସୀମାନେ ନଷ୍ଟ କରି ପାରିବେ ନାହିଁ ଏବଂ ଗ୍ରାମ ଅପରିଷ୍କାର କରି ପାରିବେ ନାହିଁ। ବସ୍ତିର ୪୦୦ ଗଜ ମଧ୍ୟରେ ଲୋକମାନେ ମଳମୂତ୍ର ତ୍ୟାଗ କରି ପାରିବେ ନାହିଁ।

୫- ଗୋଟିଏ ମାଣ ଓ ଗୋଟିଏ ତରାଜି ଷ୍ଟେଟ ଦ୍ୱାରା ମଞ୍ଜୁର ହୋଇ ଆଦର୍ଶ ମାନ ରୂପେ ବ୍ୟବହୃତ ହେବ। ତହିଁରେ ଷ୍ଟେଟର ମାର୍କା ଦିଆଯାଇ ବିକ୍ରୟାର୍ଥ ମହଜୁଦ ରହିବ।

—○—